## ତୁମର କି ଯିବ ........... 1

କଥା ଥିଲା କିଛି କହିଲନି ଗଲ ଚାଲି
ସେନେହ ମମତା ବନ୍ଧନ ଗଲ ଭୁଲି
ବେଳ ଥାଉ ଥାଉ କୁହ ଯାହା କହିବାର
ଅଳ୍ପ ସମୟ ହାତରେ ରହିଛି ମୋର
ଡାକରା ହେଲାଣି
ନେବି ମୁଁ ମେଲାଣି
ମୋ' କାଳ ଯାଉଛି ହେଉଛି ବେଳ ଉଛୁର | -୧
ଅନ୍ତରୁ ତୁମେ ପାଳୁଛ କି ଏ ମଉନ
ମୋତେ ଲାଗେ ମିଛ - ଇଏ ତୁଚ୍ଛା ଅଭିମାନ
ନିରବ ଭାଷାର ଗମ୍ଭୀର ସ୍ପନ୍ଦନ !
ମାନ-ଅଭିମାନ ଭଞ୍ଜନ କରି କରି
ନ ହେଉ ଏମିତି
ଦିନ ଆଉ ରାତି
ଦିନ ମାସ ବର୍ଷ ଯୁଗ ଯୁଗ ଯିବ ସରି | -୨
ରଖି ଅଭିମାନ ନ ଆସିବ ଯେବେ ଫେରି
ବିଷଦିତ ମୁଖ, ଅକୁହା ପୀରତି ଧରି
ଅଜଣା ଭୟରେ ଅକାରଣେ ଡରି ଡରି
ଶୟନେ ସପନେ ଜାଗରଣେ ମୋତେ ଘେରି
ତୁମର କି ଯିବ?
ମୋ ଦିନ ସରିବ
ବିଦାୟ ବେଳାର ମଉଳା ମନରେ
ଶୁନ୍ୟତାଭରା ଅବେଶପସରା
ଅଶ୍ରୁଅସରା ରୁଦ୍ଧ କଣ୍ଠେ ଭରି | -୩
(୧୮ ନଭେମ୍ବେର ୧୪)

## ତୁମେ ଯେ ଆସିଲ ଫେରି ...........2

ଫେରିଲ ସଜନୀ ମୋ ଯାତନା ଜାଣି ପାଇଲି ସ୍ୱର୍ଗସୁଖ,
ପାଶେ ଥିଲା ଖାଲି ନିରାଶାର ବାଲି - ହଟେଇଲି ହେଇ ଦେଖ !
ଧ୍ୱାନ୍ତ ରଜନୀ, ଶାନ୍ତ ଅବନୀ, କ୍ଲାନ୍ତ ଶରୀର ଭାରା,
ମଦିରା ପିଆଲା ଓଷ୍ଠରେ ମୋର ସତେ କି ଗଙ୍ଗାଧାରା !

ତୁମେ ବି ଟିକିଏ ଚାଖ
ମୋ ପରେ ଭରସା ରଖ
ତୁମ ନୂପୁରର ତାନେ,
ଜୀବନମୃତ୍ୟୁ ଗାନେ
ମୋ ପାଶେ ବସିଲେ ଟିକିଏ ହସିଲେ
ଝୁଲିବ ସୌଧ ନିଶାବିମୁଗ୍ଧ,
ଆକାଶୁ ଖସିବେ ଯୁଗ-ବିଦଗ୍ଧ ତାରା | -୪

କୁକ୍କୁଟ-କାକ ପାନ୍ଥଶାଳାର ଭିତରେ ପ୍ରାଚୀର ପାଶେ
ମୁକ୍ତ ଗଳାରେ ଅନ୍ତରହିତ ଅର୍ଥଯୁକ୍ତ ଭାଷେ
କହିଲେଣି ଶୁଣ ଖୋଲିବ ଦୁଆର ହେଲେ ମାହେନ୍ଦ୍ର ବେଳା
ଆସିବେ ନୂତନ ଯିବେ ପୁରାତନ, ହେଇ ରାତି ବିତିଗଲା |

ଏବେ - ଖୋଜି ନିଅ ନିଜ ପଥ
ହେବେ- ନବାଗତ ଉପଗତ;
ସେ ବି ତୁମପରି ଯିବେ ଏଠୁ ଫେରି
ସଭିଏଁ ଏମିତି
ଏଇଠୁ ଯାଆନ୍ତି
ଦିନେ ଆଶ୍ରୟ ତା ପରେ ବିଦାୟ
ନିୟତ ଅନ୍ଧ ବିଧାନେ ବନ୍ଧ
ବାଲୁତ ବୃଦ୍ଧ ପ୍ରାଜ୍ଞ ବୁଦ୍ଧ ବିଶ୍ୱ-ଜଗତ ସାରା | -୫
(୨୧ ନଭେମ୍ବେର ୧୪)

## ପାହି ତ ଗଲାଣି ରାତି .............3

ଗଲାଣି ତ ବିତି ଅନ୍ଧାର ରାତି ଆଖି ଖୋଲି ଦେଖ ସଖି,
ପୂର୍ବ ଆକାଶ ଝଲସି ଉଠୁଛି ରକ୍ତ ଅଭୀର ମାଖି
ଦେବାଳୟ ଚୂଡାପରେ
ଅର୍ଦ୍ଧଗୋଲକ ଆଙ୍କି ଦେଇଛି ସୂର୍ଯ୍ୟକିରଣ ଗାରେ |-୬

ଚନ୍ଦ୍ର ଲୁଚିଲା ଦୁଇଘଡି ହେଲା ଦିଗ୍ ବଳୟର ତଳେ
ଦେଖି କୋଟି ତାରା ଆଲୋକ ଇସାରା ଭୟେ ଉଷାରାଣୀ କୋଳେ
ନୟନ ଦେଲେଣି ବୁଜି
ତଥାପି ତୁମର ନେତ୍ରୁ କିପରି ନିଦ୍ରା ଯାଉନି ଭାଜି?-୭

ବାତାୟନ ପାଶେ ସୁମନ ସୁବାସେ ମତ୍ତ ଭ୍ରମର ଗୋଟି
ଅନ୍ଧ ଆବେଗେ ଭ୍ରାନ୍ତ ସରାଗେ ସତେ ବା ଯାଉଛି ଲୋଟି
ଭରା ଯଉବନେ ଥାଇ
ଏମିତି ଲଗନେ ପାରେ ନା ବୁଝି ମୁଁ କେମିତି ପାରିଛ ଶୋଇ | -୮
(୧୯୭୬)

## ଏମିତି ମାଟି କି ଅଛି ? ...........4

ପଥପ୍ରାନ୍ତର ପଥିକ ହେଉ ସେ ହେଉ ବା ରାଷ୍ଟ୍ରପତି
ଜୀବନ-ପିଆଲା ନିଃଶେଷ ହେବା ବିଧିରେ ସରଳ ଅତି;
ଉଠ ଉଠ ମଠ ଛାଡ
ପିଆଲା-ରସନ କର ଆଚମନ
ମିଶିବା ଆଗରୁ ଏ ମରଶରୀରୁ
ମାଟିରେ ମାଂସହାଡ | -୯

ଏମିତି ମାଟି କି ଅଛି କେଉଁଠାରେ କୁହ
ଧୂଳି ତଳେ ଧୂଳି ତା ତଳେ ଯେ ଶୋଇଥାଏ,
ଏତେ ସୁଖ ପାଏ - ନ ଜାଣେ ଯାତନା, କୋହ,
ଏଇଠାରେ ମୋତେ ଆଉଥରେ ପୋତ କୁହେ ? -୧୦

ଏମିତି ଟିକିଏ ମାଟି ଖୋଜି ନିତି ବୁଲେ
ଯେଉଁଠି ଶୋଇଲେ ମିଳିବ ଅଶେଷ ସୁଖ,
ସ୍ୱପ୍ନ ଅଥବା ଛାଇ ଛାଇ ନିଦ ହେଲେ
ପାଖରେ ଦିଶିବ ପ୍ରିୟ ପରିଜନ ମୁଖ | -୧୧

ଛନ୍ଦବହୁଳ ମଧୁମୟ କବିତାର
ପୁସ୍ତକ ଧରି ପ୍ରଣୟୀନି ତୁମେ ବସି
ମୂର୍ଚ୍ଛନାମୟ ମଧୁର ବୀଣାର ତାର-
ଝଙ୍କାରେ ଗୀତ ଶୁଣାଇବ ମୋ ପ୍ରେୟସୀ | -୧୨

ଋତୁରାଜ ସଜ ସାଜି କି ଆସିବ ସତେ
ଅଳ୍ପ ଯେ ଅଛି ଜୀବନର ଅବଶେଷ,
ପୀତ-ବସନ୍ତ, କୋକିଳର ତାନ ସାଥେ
ଅଧର ଧରିବ ଲୋହିତ-ବର୍ଣ୍ଣ-ବେଶ ! -୧୩

ଅର୍ଜୁନ, ଭୀମ, ଭୀଷ୍ମ, କର୍ଣ୍ଣ, ଦ୍ରୋଣ,
ଅଭିମନ୍ୟୁର ସଙ୍ଗ୍ରାମ କେଡେ ଘୋର -
ଯଶ ଯେ ପାଇଲେ ସବୁ ମରଣୋତ୍ତର,
ଜଗତେ ଜୀବିତ ରହିବା ଯାବତ
ସୁଧାବଞ୍ଚିତ, କ୍ଷତବିକ୍ଷତ,
ଭାରତ ଶାସ୍ତ୍ରେ ଅଙ୍ଗୁଳ ଅଗ୍ରେ
ଗଣନ ସମାନ ପାଲଟିଲେ ସବୁ କେତେଗୋଟି ଅକ୍ଷର | -୧୪

ପାଲଟିଲେ କେହି ଛୋଟ ଛୋଟ ବହି
କିଏ ବା ପ୍ରତିମା ସାଜି
ଝଡବର୍ଷାରେ, ଗ୍ରୀଷ୍ମକାଳରେ,
ମେଢମନ୍ଦିରେ ବନ୍ଦୀରୂପରେ
ନିଶ୍ଚଳ ଛିଡା ଆଜି | -୧୫ (୨୫ ନଭେମ୍ବର ୧୪)

## ଆଗାମୀ ପ୍ରଭାତ ରୂପ ..............5

ଅନୁଶୋଚନା କି ଅନୁତାପ ଦିଅ ତେଜି
ଗ୍ରୀଷ୍ମଦାହରେ ଜଳିବା ଆଗରୁ ମହୀ
ଘଡି ଘଡି ଦେଖ ସମୟ ଯାଉଛି ହଜି,
"ମେଲିଲି ପକ୍ଷ" - କାନେ କାନେ ଯାଏ କହି | -୧୬

ଅଗଣିତ ଫୁଲ ନିତି ନିତି ଏଠି ଫୁଟେ,
ଫୁଟି ଉଠି ପୁଣି ଝଡି ପଡି ସଢି ଯାଏ,
ଆଜିର ରାଜନ ଜୀବନ ଥିବ କି ଘଟେ
ଆଗାମୀ ପ୍ରଭାତ ସୂର୍ଯ୍ୟ-ଉଦୟ ଯାଏ ? -୧୭

ରାଜନେତା, ବୀର ଛାଡି ସଖି ଆସ ଚାଲି
ଯୋଦ୍ଧୃବେଶରେ ହେବେ ସେ ବଜ୍ରାହତ;
ସେ ଯଶ-ଗାରିମା-ବଡପଣ ଯାଅ ଭୁଲି,
ଉନ୍ମାଦିତଙ୍କୁ ନ କର କର୍ଣ୍ଣପାତ | -୧୮ (୨୬ ନଭେମ୍ବର ୧୪)

## ଏପାରି ସେପାରି ................6

ସବୁଇମାଭରା ଏପାରି - ସେପାରି ମରୁଭୂମି ନିର୍ଜଳ
ସେଇଠାକୁ ଚାଲ ମୋ ସାଥେ ଦୂରକୁ - ନାହିଁ ଯହିଁ କୋଳାହଳ,

ନାହିଁ କେହି ତହିଁ ଶାଶକ, କାହାର ନୁହେଁ କେ ଆଜ୍ଞାବହ,
ସେଠି - ଅବିରତ, ଅହରହ
ଗାଇ - ଜୀବନ-ମୃତ୍ୟୁ ଗୀତ
ବିତେ - ଗ୍ରୀଷ୍ମ, ବର୍ଷା,ଶୀତ,
ସେହି - ସେ ଦିନର ସମୀରଣ
କରି - ବିରହ-ପୀରତି ଗାନ,
ଅନୁକମ୍ପାରେ କବର ଭିତରେ
ଶାହାଜାହାନର ପୋଛୁଥିବ ଆଖିଲୁହ | -୧୯

ସେହି ଅଞ୍ଚଳେ ତରୁଶାଖାମୂଳେ ଅନ୍ନପାତ୍ର ଧରି
ହାତରେ ପିଆଲା, କବିତାର ମାଳା ହୃଦସମ୍ପଦ କରି,
ବସି ମୋ ପାଶରେ ଗାଅ ସୁଲଳିତ ଗୀତ;
ସେଇଠି ନୂତନ ସ୍ୱର୍ଗ ଆସିବ,
ପତ୍ରବିହୀନ ବୃକ୍ଷେ ଫୁଟିବ
ମନୋରମ ପାରିଜାତ | -୨୦ (୨୭ ନଭେମ୍ବର ୧୪)

## କେତେ ପ୍ରକାର ମାଟି .............7

ଶ୍ୱାପଦ, ଶୃଗାଳ ସୁଖେ ଚଳାଚଳ କଲାବେଳେ କେବେ ଦିନେ
କିଏ ଶୁଣିଛନ୍ତି ଖାତିର କରନ୍ତି ଶୋଇଛି କିଏ ସେ ସ୍ଥାନେ ?
ସେଇ ମାଟିତଳେ ବୀରର ଉପାଧି
ଚକ୍ରବର୍ତ୍ତୀ ରାଜାର ସମାଧି
ଯେତେ ବଡ ଯିଏ ଥାଉ,
କରି ପଦାଘାତ ଯେତେ ବର୍ଜିତ ଅସନା ଛାଡନ୍ତି
ବେପରୁଆ ଯାଉ ଯାଉ |
ଥିଲା ବଡପଣ ଦୁଇ ଏକ ଘଡି, କାଳର କବଳେ ପଡି
ଛାଡି ସେ ଗଲେଣି
ଯେଉଁଠାର ମଶାଣି
ସେଠି ଶୁଭେ ଏବେ ଶ୍ୱାନ-ଦର୍ଦ୍ଦୁର ରଡି | -୨୧

ଯାତ୍ରୀଦଳରେ ଗଳ୍ପଛଳରେ କହୁଥିଲେ ଦିନେ ଜଣେ -
ରାତ୍ରୀ-ବାସର ଜ୍ୟୋତି-ଅନ୍ଧାର
ଚତୁରଙ୍ଗର ଚଉଷଠି ଘର
ଏ ଘରୁ ସେ ଘର ଆମ ସାଥେ ଖେଳି
ଆମକୁ କରି ତା ସୁଖସଙ୍ଗାଳି
ସେହି ବାକ୍ସରେ ଆମକୁ ଶେଷରେ
କ୍ରୀଡନକ ଗୋଟି କରି
ଗୋଟି ଗୋଟି କରି ସେ ଅତି-ଆଚାରୀ ନିୟତି ଚାତୁରୀ
ଗୋଟେଇ ରଖିବ ଜାଣେ | -୨୨

ଆଉ କେତେ ଭୂଇଁ ଗଉରବେ ଥାଇ
କୋମଳ ପତ୍ରପୁଷ୍ପର ସମ୍ଭାରେ
କରି ସୁବାସିତ ସେଠି ଆତଯାତ ସଭିଙ୍କୁ ମୋହିତ କରନ୍ତି ସତତ
ସେହି ମାଟିତଳେ ଚିରନିଦ୍ରିତ ପ୍ରେମିକାପ୍ରେମୀଙ୍କ ହୃଦନିର୍ଗତ
ଅନାବିଳ ଅଭିସାରେ | -୨୩ (୦୧ ଡିସେମ୍ବର ୧୪)

ସଭିଙ୍କୁ ବିନତି କରୁଛି ସମ୍ପ୍ରତି ଯାଅ ନିତି ସେହି ପାଖ
ତାଙ୍କୁ ନୋହୁ ପୀଡା ଧୀରେ ହୁଅ ଛିଡା ଧୀରେ ଧୀରେ ପାଦ ରଖ | -୨୪
(ଜୁଲାଇ ୨୦୧୪)

## ହେବି ଚାରିଯୁଗ-ଯାତ୍ରୀ ..............8

ସୁଧାମୃତ ଭରି ହାତେ ପାତ୍ର ଧରି କଟିଯାଉ ଦିନ ଆଜି
ବିଗତ-ଶୋଚନା, ଭବିଷ୍ୟ-କଳନା - କି ହେବ ତହିଁରେ ମଜ୍ଜି ?
ବିତିଲା ବେଳକୁ ରାତ୍ରୀ
ନ ଥିବ ଏ ଜୀବ
ଏ ଘଟ ପାର୍ଥିବ
ପାଲଟି ଯିବି ମୁଁ ହଜିଲା ପଥରେ ଚାରିଯୁଗ-ଦୀର୍ଘ ଯାତ୍ରୀ ! -୨୫

ଥରେ ଦୁଇଥର କିଏ ଚାରିଥର ଚାଖି଼ ଜୀବନର ମଧୁ
କଲେଣି ଶୟନ, ନିରବ ମଉନ ମୂଢମତି ସାଥେ ସାଧୁ | -୨୬

ଶୂନ୍ୟତା ଦେଇ ସେ ହେଲେ ବିଦାୟୀ, ଆମ ପାଇଁ କଲେ ସ୍ଥାନ;
ରିକ୍ତ କରି ଦିନେ ଚାଲି ଯିବା ଆମେ - ହେବ କାହା ଆଗମନ ? -୨୭

କେତେଟା ମୁହୂର୍ତ୍ତ ରହିଛି ସଞ୍ଚିତ - ହଜିଯିବି ସହଜରେ
ସୁଧା, ମଧୁଗୀତି, ଗାୟକସଂଗତି ମିଳିବ କି ତାହାପରେ ? -୨୮ (୦୨
ଡିସେମ୍ବର ୧୪)

## ଆସିଥି଼ଲି ଜଳ, ଫେରିବି ତୋଫାନ ସାଜି 9

ଘଡି ଦି'ଘଡିର ଯୋଜନାରେ ଫେରି ଆସିବ ଭାଗ୍ୟପୋତ ?
ଏପାରି ସେପାରି ଶୂନ୍ୟ ସବୁରି - ଶୁଣ ପ୍ରଭାତର ଗୀତ | -୨୯

ଏଇ ଦୁଇପାରି ବିଚାରି ବିଚାରି କେତେ ଯେ ଦାର୍ଶନିକ
ନିର୍ବାକ୍ ସାଜି ପରପାରେ ଆଜି ଆଖି଼ ଖୋଲି ଥରେ ଦେଖ | -୩୦

ମୋ ସାଥୀରେ ଆସ ଶୁଣ ସନ୍ଦେଶ ପରିଣତ ବୟସର
ତର୍କଶାସ୍ତ୍ର, କଥନ ଗଭୀର ଭୁଲିଯାଅ ବିଦୁଷର;
ମୋ ବଚନ ଥରେ ଶୁଣ
ପଦ୍ମପତ୍ର-ସଲିଳ ମାତ୍ର ଜୀବନ ଅଧୀର
ଏତିକି ମାତ୍ର ଜାଣ | -୩୧

ବାଳୁତ ବୟସେ ମହା ଉଚ୍ଛ୍ୱାସେ ଶୁଣୁଥି଼ଲି ମହାବାଣୀ;
ଭିତରେ ପଶିଲି ଯେ ଦୁଆର ମେଲି ସେ ଦ୍ୱାରେ ଫେରିଲି ପୁଣି | -୩୨

ଜ୍ଞାନୀଙ୍କ ମତରେ ମୋ ନିଜ ହାତରେ ବୁଣିଲି ଜ୍ଞାନର ମଞ୍ଜି;
ଏଇ ମୋ ଅମଳ - ଆସିଥି଼ଲି ଜଳ, ଯିବି ମୁଁ ତୋଫାନ ସାଜି | -୩୩ (୫-
୬ ଡିସେମ୍ବର ୧୪)

## ପରଦାର ଆଢୁଆଳେ ................10

କେଉଁଠୁ ଆସିଲି ଘର ଏଠି କଲି - କିଛି ମୋତେ ଜଣା ନାହିଁ,
କେତେ ଦିନ ପରେ ଯିବି କେଉଁଠାରେ କେହି ନ ପାରିଲେ କହି;
ଜ୍ଞାନର ଚର୍ଚ୍ଚା ବେଳେ
ପର୍ଦ୍ଦାର ଆଢୁଆଳେ
ଥରେ - ଦେଖିଲି ଗୋଟିଏ ଛାଇ
ହେଲେ - ଚାବି ତ ନ ଥିଲା ତହିଁ;
ଛିଡା - ରହିଲି ମୁଁ ସେ ଦୁଆରେ,
କ୍ଷଣେ - ବାର୍ତ୍ତାଳାପର ପରେ
ଦେଖିଲା ବେଳକୁ
ଉପରୁ ତଳକୁ
ସେଠି - ଛାଇ ବୋଲି କିଛି ନାହିଁ
ସବୁ - ଯାଇଛି ସେଠୁ ଉଭେଇ | -୩୪

ଜୀବନମୂଲ୍ୟ କହିବା ତୁଲ୍ୟ ପହଞ୍ଚିଲି ଯାହାପାଖ
କିଏ ମୁଁ, କେଉଁଠୁ କେଉଁଠି ମୋ ଗତି ଜାଣିବାକୁ ଉତ୍ସୁକ,
ସବୁ - ପୁରୁଣା ଶାସ୍ତ୍ର ଧରି
କିଛି - ଉଦ୍ଧାର ତହୁଁ କରି
ମୋତେ - ଯିଏ ବୁଝେଇଲେ ଯାହା
ସବୁ - ଅନୁଭବହୀନ ଆହା !
ଜାଣି - ଗଲି କେହି ନାହିଁ ସାହା
ତହୁଁ - ସୁଧାର ପାତ୍ର ପାଶେ
ରହିଲି ମୌନ, ଶରଣାପନ୍ନ, ମୋର - ସ୍ମୃତିକୁ ଧୋଇବା ଆଶେ | -୩୫

ପୃଥ୍ୱୀଲୋକରୁ ଚନ୍ଦ୍ର-ଇନ୍ଦ୍ର-ରୁଦ୍ରଲୋକକୁ ଯାଇ
କୋଟି ବନ୍ଧନ ଗୋଟି ଗୋଟି କରି ଚାଲିଗଲି ମୁକୁଳେଇ,
ହେଲେ - ଭାଗ୍ୟ-ମରଣ ଡୋର
ଶକ୍ତ ଶିକୁଳି ନ ଗଲା ହୁଗୁଳି,
ହେଲି ନିରୁପାୟ, ମଣି ଅସହାୟ
ମୋର ପରାଜୟ କରିଲି ଅଙ୍ଗୀକାର | -୩୬ (୦୬ ଡିସେମ୍ବର ୧୪)

## ଶେଷ ଦିବସର ପଞ୍ଜିକା ............11

ଅଳସ ଚପଳ ତରଳ ସଲିଳ ଧାରା
କୂଳର ଉପଳ କୋଳରେ କୁନ୍ଦ କଳି
ଦୋହଲାଇ କଟୀ, ଛୁଇଁଯାଇ ମାଟି,
ପୀୟୂଷ-ପାନ ଇସାରା -
ଭୃଲତା-ନୃତ୍ୟେ
ପ୍ରେମ-ଇଙ୍ଗିତେ
କଲାଣି ଶୀତଳ ମୃଦୁଳ ଶୀକରେ ଝୁଲି |
ସହସା ତାହାର ଦୁଇଘଡି ହେବ ଶେଷ,
ଅନ୍ତିମ ବେଳା ହେଲେ ହେଁ ତା ଖେଳା ମମତା ଉଚ୍ଛୁଳା
ଛଳହୀନ ସନ୍ଦେଶ !
ଆସ - ମୋ ସାଥେ ସେଇଠି ବସ
ଶୁଣ - ଶୁଭ୍ର ଶାନ୍ତ କୁନ୍ଦଦନ୍ତ
ମତ୍ତ କଳିର ସମ୍ଭ୍ରମଭରା
ସ୍ମିତ, ଅନ୍ତିମ ହସ | -୩୭

ପ୍ରଳୟ ଅନ୍ତେ ନୂତନ ସର୍ଗ ଗଢି
ନବଗ୍ରହଙ୍କ ହାତେ ନିଷ୍ଠୁର ଖଡି
ପ୍ରଥମ ମାଟିରେ ଆଙ୍କି ଦେଇଛି
ଶେଷ ଜୀବନ୍ତ ପ୍ରାଣୀର ଅନ୍ତ,
ପୁଣି ତା ସହିତ ସବୁରି ଭାଗ୍ୟ ରେଖା;
ଚିତ୍ରଗୁପ୍ତ ବସିଛି ସେ ବହି କାଢି -
ଆମ - ଜନ୍ମ ଆଗରୁ,
ମଧ୍ୟ ଭାଗରୁ,
ଜୀବନ ଅନ୍ତ ମାଟିର ଗର୍ତ୍ତ,
ତାର – ନକ୍ସା, ଠିକଣା ସବୁ ଅଛି ସେଠି ଲେଖା | -୩୮(୯-୧୯
ଡିସେମ୍ବର '୧୪)

## ନୂତନ ବର୍ଷ କଣ ଦେବ ? ...........12

ଭାବୁଥିଲି ଥରେ ଜୀବନ ଭିତରେ
ନୂତନ ବର୍ଷ ଦେବ କି ହର୍ଷ, କରିବି ସମ୍ଭାଷଣ;
ରୁହେ ମୁଁ ନିରବ କରି ଅନୁଭବ
ସବୁ ପୁରାତନ ପରି ଏ ନୂତନ ବର୍ଷ ନିଷ୍ଚେତନ,
ମାନବ ମନର କଳ୍ପନା-ସମ୍ଭୂତ -
ସମୟ ସ୍ରୋତରେ ଟାଣିଦେଲେ ଗାର
ସେ ଗାର ହେବନି ନିମିଷେ ବି ସ୍ଥିର,
ପାରିବନି ରହି, ଭାସି ଚାଲିଯିବ ସ୍ରୋତ;
ନିର୍ଜୀବ ନବ ବର୍ଷ ବୁଝିବ କେବେ ମୋ ସୁସ୍ୱାଗତ ? -୩୯

ଚିରସତ୍ୟର ଜ୍ୟୋତିରୁ ସୂକ୍ଷ୍ମ ରେଖା -
କରୁ ସେ ଶୀତଳ, ଭରୁ ବା ଗରଳ
ସେଇ ମୋର ଚିର ସଖା |
ପାନ୍ଥଶାଳାରେ ସେଇଥିରୁ ଏକ ସୂକ୍ଷ୍ମ ରଶ୍ମି ଭଲ,
ଭକ୍ତ-ଭିଡରେ ହଜିଯିବା କେବେ ହେବ କି ତା ସମତୁଲ ? -୪୦

ଶଙ୍କାପୂରିତ ଜୀବନର ପଥ ଦେଇଅଛି ଯିଏ ଗଢି,
ନାହିଁ ତ ଯୋଜନା, କହି 'ପାପମନା'
ରଖିଦେବ ମୋତେ ଚିର ସନ୍ତାପେ ବେଢି **?** -୪୧ (୨୨ ଡିସେମ୍ବର '୧୪)

## ଶୁଣିଲି ଆକାଶବାଣୀ ..............13

ଚାହିଁ ଆକାଶକୁ ପଚାରିଲି ଥରେ "କେଉଁଠି ଆଲୋକ ଅଛି ?
ତାର - ବାଜୁତ ଜୀବଙ୍କୁ ଦେଖାଇବ ପଥ, ଅନ୍ଧାରେ ଦିଶୁନି କିଛି |"
ଶୁଣିଲି ଆକାଶୁ ବାଣୀ ଏକ ଗମ୍ଭୀର -
"ତୁମ - ଅନ୍ଧପୁତୁଳି ବନ୍ଧା ରହିବ" - ପାଇଗଲି ଉତ୍ତର | -୪୨

"କନ୍ଦୁକ କେବେ ରାଜି କି ଅରାଜି କୁହେ ଖୋଲି ନିଜ ମୁଖ ?
ଯେମିତି ପ୍ରହାର ଗତି ସେ ପ୍ରକାର କରି ଚାଲିଯାଏ ଦେଖ;
ଉପରୁ ତୁମକୁ ମାଟିରେ ଥୋଇଛି ଯିଏ,
ଏ ଗୂଢ ରହସ୍ୟ ଜାଣେ ଏକା ସବୁ ସିଏ |" -୪୩

ପଲକଟିଏ ବି ଜୀବନର ମଧୁ ତେଜି
କି ଲାଭ ପାଇବ ଜୀବନ ଯାଉଛି ହଜି;
ଆକାଶ ରିକ୍ତ, ତାରକା ଅସ୍ତ
ଯାଆନ୍ତେ ରାତ୍ରୀ ମରୁର ଯାତ୍ରୀ ପରି,
ମଧୁପାନେ କର ଜୀବନ ଧନ୍ୟ
କର ନାହିଁ ଆଉ ଡେରି | -୪୪ (୨୨ ଡିସେମ୍ବର ୧୪)

## କରିଦିଅ ଉଦ୍ଧାର .......................14

ଅଶୁଭଶୁଭର ଅନ୍ତବିହୀନ ବିଚାରୁ ମିଳିବ କିଛି**?**
ସୁଖେ କାଟ ଦିନ - ବିଚାରୁ ବିଚାରୁ ହଜିଯିବ ଯାହା ଅଛି | -୪୫

ଅନେକ ଦିନର କୋଳାହଳ ପରେ ବିଦାୟ ଦେଇଛି ଶେଷେ
ତର୍କବହୁଳ ଶାସ୍ତ୍ର ସକଳ ଶାନ୍ତିସୁଧାର ଆଶେ | -୪୬

ତ୍ରିକୋଣମିତିଠୁ ଜ୍ୟାମିତିର ରେଖା ଉପରୁ ତଳକୁ ଟାଣି
ଚାଲିଥିଲେ ସୁଦ୍ଧା ବୁଡିଥିଲି ସଦା ସୁଧାର ପାତ୍ରେ ଜାଣି | -୪୭

ଦେବଦୂତ ଜଣେ ଆସିଥିଲେ ଥରେ ହାତରେ ପାତ୍ର ଧରି -
ସେଥିରୁ ଚାଖିଲି, ସହସା ଦେଖିଲି ଜୀବନ ଉଠିଛି ଭରି | -୪୮

ଯେଉଁ ସୁଧାପାନ କରି ଆଚମନ ଚୌରାସି ଲକ୍ଷ ଜୀବ
ମୁଗ୍ଧ, ମଉନ ସେଇ ସୁଧାଧନ କେବେ କି ଶୂନ୍ୟ ହେବ ? -୪୯

ବୀରଦର୍ପରେ ଶତ୍ରୁ ବିଦାରି କେତେ ରଥୀ-ମହାରଥୀ
ରାଜ୍ୟବିଜୟୀ ଦେଖ ଧରାଶାୟୀ ଶିବାଳୟ ତାଙ୍କ ସାଥୀ | -୫୦

ପଣ୍ଡିତଜନେ କଥାଖଣ୍ଡନେ, କଳହେ ରହିବେ ରତ,
କଳିକନ୍ଦଳେ କି ବା ସୁଖ ମିଳେ ସେ କଥା ତାହାଙ୍କୁ ଜ୍ଞାତ | -୫୧

ଯାଦୁଗର ହାତେ ଆକାଶର ପଥେ ଉଡି ଆସିଥିବା ପରି
ଆମେ ଏ ମାଟିରେ ପୃଥିବୀ ପିଠିରେ ଆସିଅଛୁ ଅବତରି | -୫୨

ପୀୟୂଷପାନରେ ମଗ୍ନ ରହି ବି ଶୂନ୍ୟତାଭରା ଶେଷେ
ହେଲେ ହେଁ ଜୀବନ, କରି ସୁଧାପାନ ଥାଅ ଶାଶ୍ୱତ ପାଶେ | -୫୩

ଭାଗ୍ୟଦେବୀର ହାତରେ ଲେଖନୀ ଚାଲିଛି ଆଗକୁ ଲେଖି;
ପୁଣ୍ୟପସରା, ଅଶ୍ରୁର ଧାରା ପାରିବ କି ତାକୁ ରୋକି ? -୫୪

ଅମ୍ବୁଦଭରା ଗମ୍ବୁଜଠାରେ କର ନା କିଛି ଗୁହାରି;
ଭାଗ୍ୟ ହାତରେ ଖେଳନା ଗୋଟିଏ ସିଏ ବି ଆମରି ପରି | -୫୫

ପଞ୍ଚଭୂତରେ ସୂକ୍ଷ୍ମଶରୀର କରିଛ ଯେ ସମାହାର !
ଜନ୍ମ-ମରଣ ଚକ୍ର ଭିତରୁ କରିଦିଅ ଉଦ୍ଧାର | -୫୬ (୨୯ ଡିସେମ୍ବର ୧୪)

**କର ସତ୍ୟର ସନ୍ଧାନ ...........15**

କିଏ ଭୂଲୋକର କିଏ ଦ୍ୟୁଲୋକର କରିଚାଲେ ଗୁଣଗାନ,
ଚାଲିଯାଏ ଖସି ପାଖେ ଥିବା ଖୁସି ଖୋଜି ସେ ସୁଦୂର ତାନ | -୫୭

ଗୋଲାପର କଳି ହସି କରେ ଅଳି - ନେଇଯାଅ ମୋତେ ତୋଳି,
ମୋର ସୁଗନ୍ଧ ଦେଉ ଆନନ୍ଦ, ନିଅ ମୋତେ ମୋର ମାଳୀ | -୫୮

ସେ ଫୁଲର ସାଥୀ ତା' ମୂଳର ମାଟି ରହି ରହି ଦିଏ ଡାକ -
ଅମୀୟ ସୁବାସ ପ୍ରେମସୁଧାରସ ଘେନ ଏ ଜୀବନ ଯାକ | -୫୯
ଶୁଣି ମୁଁ କାନରେ ଭାବିଲି ମନରେ - ଏଇ ଉଦ୍ୟାନ ମାଟି
ପ୍ରୀତିଚୁମ୍ବନେ ବୁଡିଥିବ ଦିନେ ଅବିରତ ଦିନରାତି | -୬୦

ପାଦତଳ ଦେଇ କାଳ ଯାଏ ବହି; ହୁଅ ନାହିଁ ଉଦାସୀନ,
ଦୂର ଅନାଗତ, ହଜିଲା ଅତୀତ - ସେଥିରେ ଦିଅ ନା ମନ | -୬୧

ସତ୍ୟକଥନ ସତ୍ୟମନନ ସତ୍ୟର ସନ୍ଧାନ -
ଆପଣା ଭିତରେ ଏଇ ମୁହୂର୍ତ୍ତରେ କର ସେ ମଦିରା ପାନ | -୬୨

ଦେଖ - ଋତୁରାଜ, ପୁଷ୍ପର ସାଜ, ପକ୍ଷୀର କଳରବ,
ଯଉବନ ସାଥେ ହଜିଲେ ତା ପଥେ ହେବ ଆଉ ଅନୁଭବ ? -୬୩

ଏକାକୀ ସତ୍ୟ ରହିଛି ନିତ୍ୟ ତୁମରି ଭିତରେ ଲୁଚି,
ତାକୁ ନିଅ ଦେଖି ଖୋଲା ଥାଉଁ ଆଖି, ସେଇଥିରେ ରଖ ରୁଚି | -୬୪
(୨୯ ଡିସେମ୍ବର ୧୪)

## ମାଟିଘଟର ଆଳାପ  ................16

କୁମ୍ଭକାରର କର୍ମଶାଳାରେ ପାତ୍ର ଗୋଟିଏ କଥା
କହୁଥିଲା ଥରେ ବିନୟେ କାତରେ – କାହା ଲାଗି ଅସ୍ମିତା ?
ତୋହର ବି ଦିନେ ନିଶ୍ଚେ ଆସିବ ବେଳ
ଧୀରେ ମୋତେ ଧର, ତୋର ଅନ୍ତର
ଭିତରୁ ବାହାର କର ଏ ବିକାର,
ସରିଯିବ ତୋର ଦୁଇ ଦିନେ ଧୂଳି ଖେଳ | -୬୫

ଆରେକ କୁମ୍ଭ ଧୀରେ ଧୀରେ କହୁଥାଏ
ପାରିବ କି କହି କିଏ ସେ କୁମ୍ଭ,
କୁମ୍ଭଗଢାଳି କିଏ ? -୬୬

ଆଉ କିଏ କୁହେ ଆକୃତି ଦେଇ ଯେ କଲା ମୋ ନିର୍ମାଣ
ଭାଙ୍ଗି ସେ ମୋତେ ମାଟିରେ ମିଶାଏ ଏହି କି ତା' ବଡପଣ ? -୬୭

କୁହେ ଆନ କିଏ ଏଡିକି ସେନେହେ ଗଢିଦେଇ ମୋ ମୂରତି
ସେଇ ନିଜେ ମୋତେ ଭାଙ୍ଗି ଫିଙ୍ଗିଲା ଇଏ କି ଚପଳ ମତି ? -୬୮

ଉତ୍ତର କେହି ନ ପାରିଲେ ଦେଇ ବିରାଜିଲା ନିରବତା,
କୁମ୍ଭକାରର କମ୍ପନ ହେଲା ଘୂରିଗଲା ତାର ମଥା | -୬୯

ମାଟିଘଟଟିଏ ପୁଣି କହୁଥାଏ
ପଣ୍ଯଶାଳାର ଅନୁଭବୀ ରକ୍ଷକ
କହୁଥିଲେ ଶୁଣ ଆସୁ ଶୁଭଦିନ
ସେ ଆଦିକାରଣ କରୁଣାନିଧାନ
ଶୁଣିବ ସଭିଙ୍କ ଡାକ | -୭୦

ଏଣେ କୁହେ ଏକ ସୁଧାବଞ୍ଚିତ ଘଟ -
ବିସ୍ମରଣରେ ଆଜିମୁଁ ଶୁଷ୍କ
ଯେଉଁ ସୁଧାରସେ ହେବି ମୁଁ ପୁଷ୍ଟ
ସେଇଥିରେ ଭରି ଦେଇଯାଅ ମୋର ପେଟ | -୭୧

ପୂର୍ଣ୍ଣମସୀର ଜହ୍ନକିରଣ ତଳେ
ଘଟପାତ୍ରର ଏହି ପରି କୋଳାହଳେ
ଫିକା ଫିକା ତେଣେ ଶୁଭୁଥିଲା କଡମଡ,
କୁମ୍ଭକାରର କାନ୍ଧ ଭିତରେ ଭାଙ୍ଗି ଚାଲିଛି ହାଡ | -୭୨

ଭାବିଲି ଶାସ୍ତ୍ର ଘୋଷି ଚାଲିଥାଏ ଯିଏ
ବାଲ୍ୟକାଳରୁ ବୃଦ୍ଧ ବୟସ ଯାଏ
ସେହି ବିଜ୍ଞଠି ନାହିଁ ଯେ ଦୁଆର ଚାବି,
ଅସ୍ଥିରୁ ମୋର ହେବ କି ବାହାର
ଦଧିଚିଙ୍କ ପରି ସମାଧିରେ ବସି ଯିବି ? -୭୩ (୦୧ ଡିସେମ୍ବର ୧୪)

## ହଜିଯିବି ଶାଶ୍ୱତ ଓଁକାରେ ............17

ଅନେକ ଦେବତା ପୂଜି ମୁଁ ବାଲ୍ୟକାଳୁ
ଶାଶ୍ୱତ ସୁଖ ନ ପାଇଲି ଧରାତଳୁ |
ଶୁଷ୍କ ଜୀବନ ଅନ୍ତ ଘଟିଲେ ମୋର
ଖୋଜି ନେବ ଏକ ପୁଷ୍ପିତ ନଦୀଧାର,
ଶୋଇଦେବ ମୋତେ ଏକା ସେଇ ଉପବନେ
ସେ ଫୁଲ ସୁବାସ, ସଙ୍ଗୀତ-ରସ
ଫୁଟାଇବ ହସ
ପଥ ଭୁଲିଥିବା ହତାଶ ପଥିକ ପ୍ରାଣେ | -୭୪

ଗ୍ରନ୍ଥପଠନ, ସ୍ତୋତ୍ରଗାୟନ, ସବୁ ମୋ' ଯାଇଛି ସରି
ମାଦକତାହୀନ ଶୂନ୍ୟ ଜୀବନ ସମ୍ମୁଖେ ଅଛି ପଡି | -୭୫

ଥାଆନ୍ତା କି ମୋର ଶକ୍ତି ପ୍ରଚୁର, ଭାଗ୍ୟ ହାତରୁ ଡୋର
ଛଡାଇ ଆଣନ୍ତି, ନୂତନ ଗଢନ୍ତି ହୃଦମତେ ସଂସାର | -୭୬

ସଞ୍ଚରି ଆସେ ସନ୍ଧ୍ୟା-ଆକାଶେ ନୂତନ ଚନ୍ଦ୍ରାଲୋକ,
ଯିବି ଯେବେ ଚାଲି ଖୋଜିବ ସେ ଖାଲି ବୃଥା ମୋତେ ଅପଲକ | -୭୭

ଶେଷ ଇଚ୍ଛା ମୋ ଶୁଣ -
ଜୀର୍ଣ୍ଣ ଏ ଘଟ ହେବ ଯେବେ ନିଷ୍ପ୍ରାଣ
ମୋ ସମାଧିପୀଠେ ଭସ୍ମ ନିକଟେ
ଯାଇ ଥୋଇଦେବ ଶୂନ୍ୟଗର୍ଭ
ସ୍ଥିରନିଶ୍ଚଳ
ଗୁଞ୍ଜନଶୀଳ
ଶୀର୍ଣ୍ଣ ବଂଶୀଟିଏ,
ସେଇଠାରେ ଥାଇ ଶୁଣୁଥିବି ଶୋଇ
ଶାଶ୍ୱତ ଗୀତ କାଳର ଅନ୍ତ ଯାଏ | -୭୮

ଦେଶକାଳାତୀତ ଅବିନାଶୀ ସଙ୍ଗୀତ
ଚିର ଓଁକାର ଧ୍ୱନି –
ସବୁଦିନ ପାଇଁ ସତ୍ତା ମୋ' ତହିଁ ଦେବି ମୁଁ ହଜାଇ
ଜଗତ ମିଥ୍ୟା ଜାଣି | -୭୯ (୧-୨ ଡିସେମ୍ବର ୧୪)

-ସମାପ୍ତ-